# ହନୁମାନ ଚାଳିଶା ।

ଭକ୍ତ ৺ ଶ୍ରୀ ତୁଳସୀଦାସଙ୍କ

ରଚିତ

ଶ୍ରୀମାନ ଦେବୀ [illegible]

ଦ୍ୱାରା

ଅନୁବାଦିତ ଓ ପ୍ର[illegible]



PRINTED
BY
The Fraser Printing & Publishing
Co., Ltd.
SAMBALPUR,
1924.

ମୂଲ୍ୟ —— [illegible]



ବଙ୍ଗବର୍ଣ୍ଣ ପ୍ରାଚୀନ ଭୂତକାଳୀୟ ପ୍ରଶଂସନୀୟ ଓ ଭୁକ୍ତ ଦାସଙ୍କର ବିରଚିତ ଗ୍ରନ୍ଥସମୂହରେ ହନୂମାନ ସମ୍ପର୍କ ରହିଥିବା ତାହା ଉତ୍କଳୀୟ ପଦରେ ଅନୁସନ୍ଧାନକର ଦେଇଥିବା ଗୀତ ଉତ୍କଳ ଭାଷାରେ ଅନୁବାଦ୍ କରି ପାଠକମାନଙ୍କ ସମ୍ମୁଖ କରୁଅଛି । ଯେଉଁମାନଙ୍କର ହନୂମାନଙ୍କର ଚରିତ୍ରରେ ଶ୍ରଦ୍ଧାଥାଏ ସେମାନଙ୍କର ପ୍ରୀତିବୋଧ ହେବ ଭାଇମାନେ ! ଯାହାର ଇଚ୍ଛାହୁଏ ନେଇ ଅଭିନବ ପୂର୍ବକ ପଠନ କରିବା ହେଉନ୍ତୁ । ଇତି

ଶ୍ରୀମାନ୍ ଦେବାରି ଦାସ ମହନ୍ତ
ମହାଗ୍ରାମ ସମ୍ବଲପୁର
ଏ ଫୋଷାଭଞ୍ଜ ପଠ

# ହନୁମାନ ଚାଳିଶା ।

---

## ରାଗ ( ରାମକେରୀ )

ଶ୍ରୀଗୁରୁ ଚରଣ ସରସି   ଜରେ ରହୁ ମୋଧ୍ୟାନ ।
ତାଦାତ୍ମ୍ୟ ଭୃଙ୍ଗ ସ୍ୱରୂପରେ   କରଇଁ ଆସ୍ୱାଦନ । ୧ ।
ସେହି ପାଦରଜ ମୁକୁର   କାନ୍ତି ଆତ୍ମାକୁ ସ୍ନଉ ।
ଖଣ୍ଡିବ ଅଶେଷ କଳୁଷ   ଭବ ଯିବ ନିସ୍ତର । ୨ ।
ଗୁରୁ ରୂପୀ ଯେ ରଘୁରାଣ   ବର୍ଣ୍ଣିବ କୀର୍ତ୍ତିପାର ।
ରାମଚନ୍ଦ୍ର ଗୁଣ ଗାଇଣ   ବାଲ୍ମୀକି ସେ ଉଦ୍ଧାର ।୩।
ଧର୍ମାର୍ଥ କାମ ମୋକ୍ଷାଦ୍ଧ   ହେବା କର୍ତ୍ତା ଈଶ୍ୱର ।
ଦାସ ଅନୁଚର ତାଙ୍କ   ଅନନ୍ତ ମହାବୀର । ୪ ।
ତାଙ୍କଧନେ ଫଳ ପାଇବା   ନିଷ୍ଠା ତତ୍ତ୍ୱ ରଖି ।
କୃପାକରି ଫଳଦ ହେବେ   ଅନଭିଜ୍ଞତା ଦେଖି । ୫ ।
ଧ୍ୟାନରେ ପବନ ନନ୍ଦନ   ମୋ ନିବେଦନ ଘେନ ।
ବଳ କୌଶଳ ବିଦ୍ୟାଧନ   ଦେଇ କ୍ଲେଶ ଖଣ୍ଡନ । ୬ ।
ଅବଶ୍ୟ ସୁଦୟା କରିବେ   ଏହି ଭରସା ମୋର ।
ହନୁମାନ ସ୍ତୁତି ଶୁଣିଲେ   ଦୟା ହେବ ଶଙ୍କର । ୭ ।

ରାମଚନ୍ଦ୍ରଙ୍କ ପରିକର , ଅସୀମ ବଳଶାଳୀ ।
ଅଞ୍ଜନୀ କୁମାର ପବନ ନନ୍ଦନ ପଦାବଳୀ । ୮ ।
ବିକ୍ରମରୂପେ ମହାବୀର ବଜ୍ର ଅଙ୍ଗ ସେ ଲୋକ ।
ଅଧର୍ମିଙ୍କର ହନ୍ତା ପ୍ରଭୁ ଧର୍ମଧାରକ ପ୍ରଭୁ । ୯ ।
କନକ ବର୍ଣ୍ଣ ଶୋଭିତ ଜ୍ୟୋତି ତବ ପ୍ରଖର
ବିଜ୍ଞାନ ପୂର୍ଣ୍ଣ ଅଙ୍ଗେ ତବ କର୍ଣ୍ଣେ କୁଣ୍ଡଳ ସାର । ୧୦ ।
କୁଞ୍ଚିତ କେଶରେ ଜଡ଼ିତ କନକ କାନ୍ତି ଅଛି ।
ହସ୍ତରେ ବଜ୍ର ଶୋଭୁଅଛି ଜୟ ପତାକା ଶୋଭି । ୧୧ ।
ଯଜ୍ଞୋପବିତ ସ୍କନ୍ଧଦେଶେ କଟୀବନ୍ଧ କାଛନ୍ଥା ।
ଶିବାତ୍ମଜ କେଶରୀ ପୁଅ ତେଜ ପ୍ରଖର ନିଷ୍ଠା । ୧୨ ।
ଚତୁର୍ଦ୍ଦଶପୁରେ ବିଖ୍ୟାତ ବିଜୟ ନାମେ ଖ୍ୟାତ ।
ଗୁଣ ସାଗର ହେ ଚତୁର ବିଦ୍ୟାପୂର୍ଣ୍ଣ ସୁକାନ୍ତ । ୧୩ ।
ଶ୍ରୀରାମଙ୍କ କାର୍ଯ୍ୟେତତ୍ପର ଆଜ୍ଞାମାତ୍ରେ ତା କରି ।
ରଘୁବରଙ୍କର ଚରିତ୍ର ଶୁଣନ୍ତି ସ୍ନେହ ଧରି । ୧୪ ।
ରାମ ଲକ୍ଷ୍ମଣ ସୀତାଙ୍କର ମନ ମୁଗ୍ଧ କାରକ ।
ସୂକ୍ଷ୍ମରୂପେ ଅଶୋକବନେ ସୀତା ଦର୍ଶନେ ଦେଖ । ୧୫ ।
ବିକଟ ଭୀମାକାର ହୋଇ ଲଙ୍କାକୁ ଦଗ୍ଧ କଲ ।
ଭୀମାକାରେ ପ୍ରଚଣ୍ଡରୂପେ ଅସୁରଙ୍କୁ ମାରିଲ । ୧୬ ।
ଶ୍ରୀରାମଙ୍କ କାର୍ଯ୍ୟେ ତାତ୍ପର୍ଯ୍ୟ କଲପ୍ରେମକୁ ଧରୁ ।
ସଞ୍ଜୀବନୀ ଆଣି ଲକ୍ଷ୍ମଣ ପ୍ରାଣକୁ ରଖାଡାଶ୍ୱ । ୧୭ ।

ଶ୍ରୀରାମଚନ୍ଦ୍ର ପ୍ରଭୁଙ୍କର   ଆଲିଙ୍ଗନ ପାଇଲ
ରଘୁନାଥଙ୍କର ପ୍ରଶଂସା   ସୁପାତ୍ର ତୁମ୍ଭେ ହେଲ । ୧୮ ।
ଶ୍ରୀରାମ କହନ୍ତି ହେହନୁ   ତୁଥପଣ୍ଡଲୁ ଲଙ୍କ ।
ସମ୍ପୂର୍ଣ୍ଣ ସ୍ନେହଟ ସ୍ୱପାତ୍ର   ଶୋଭନ୍ତ ପୂର୍ଣ୍ଣଚନ୍ଦ୍ର । ୧୯ ।
ସହସ୍ର ଅଙ୍ଗ ମେ ରାବଣ   ତୁମ୍ଭଯଶ ଗାଆନ୍ତି ।
ଏହା ପ୍ରକାଶି ରାମଚନ୍ଦ୍ର   ପ୍ରେମାଲିଙ୍ଗନ ଦେନ୍ତି । ୨୦ ।
ସନକାଦି ବ୍ରହ୍ମା ନାରଦ   ମୁନିଏ ଆଦି ଗଣ ।
ସରସ୍ୱତୀ ଯମ କୁବେର   ଅବର ଦେବ ଗଣ । ୨୧ ।
ଅନନ୍ତ ଦିଗ ପାଳାଦିରେ ହୋଇନ୍ତୁ ଖ୍ୟାତ ଯନ୍ତ୍ର
ସୁଗ୍ରୀବଙ୍କ ଉପକାର   ରାମଚନ୍ଦ୍ର ମିଳନ । ୨୨ ।
ରାଜପଦ ସେ ଯେ ପାଇଲେ ଉମ୍ଭବି କୌଶଳେ ।
ତବ ବୁଦ୍ଧିଜ୍ଞାନେ କପୀଶ   ପଦପାଇ ରହିଲେ । ୨୩ ।
ତୁମ୍ଭଜ୍ଞାନରେ ବନ୍ଦୀଗଣ   ଦେଖନ୍ତି ସେ ଲଙ୍କେଶ୍ୱର ।
ଚତୁର୍ଦ୍ଦଶ ଲୋକ ଜାଣିଲେ ସମ୍ପୂର୍ଣ୍ଣ କାର୍ଯ୍ୟ ବୀର । ୨୪
ଦ୍ୱାଦଶ ସହସ୍ର ଯୋଜନେ ଉଡ଼ ପ୍ରକାଶ ମାନ ।
ଶୈଳ ବଡ଼ବୃକ୍ଷେ ମଧୁର   ଫଳ ଜାଣି ଭକ୍ଷଣ । ୨୫ ।
ଶ୍ରୀରାମ ଦତ୍ତ ଅଙ୍ଗୁଳିକା   ପାଇ ମୁଖେ ରଖିଲ ।
ରତ୍ନାକରକୁ ଲଙ୍ଘିଗଲ   ମନେ କ୍ଷୋଭ ନ କଲ । ୨୬ ।
ଅସାଧ୍ୟକୁ ସାଧ୍ୟ କରିତା   ଅଗମ୍ୟରେ ଗମନ ।
ଛିଡ଼ିଲେ ଦୁର୍ଗମ ସ୍ଥାନକୁ   ଯିବାକୁ କାହିଁ ଆନ । ୨୭ ।

ରାମଚନ୍ଦ୍ରଙ୍କ ଦ୍ୱାର ପାଳ    ଶ୍ରୀରାମ ଆଜ୍ଞା ବିନା ।
ପ୍ରବେଶ ହୋଇ ନ ପାରନ୍ତି    ଦେଖି ତୁମ୍ଭ ସାତନା । ୨୮ ।
ତୁମ୍ଭେ ସୁରକ୍ଷକ ନିର୍ଭୟ    ଚତୁର୍ଦ୍ଦଶ ଭୁବନ ।
ତବ ଶରଣା ପନ୍ନଥିଲେ    ସବୁ ସୁଖ ସମ୍ପୂର୍ଣ୍ଣ । ୨୯ ।
କୋପହେଲେ କାଳେ ଗର୍ଜନେ ତ୍ରିଲୋକ ଭୟଙ୍କର ।
ମହାବୀର ରବ ଶୁଣନ୍ତେ    ସ୍ଥାନ ସେ ତ୍ୟାଗକାର । ୩୦ ।
ତୁମ୍ଭେ ରକ୍ଷାକର୍ତ୍ତା ଯାହାର    କାହାକୁ ନାହିଁ ଭ୍ରାନ୍ତି ।
ଆପଣଙ୍କ ନିଜ ତୋପରେ    ଅଟେ ଶାନ୍ତ ରଜନ୍ତି । ୩୧ ।
କୋପହେଲେ କାଳେ ଗର୍ଜନେ ତ୍ରିଲୋକ ଭୟଙ୍କର ।
ଶ୍ମଶାନ ବାସୀଭୂତ ପ୍ରେତ    ନାମ ଶୁଣନ୍ତେ ଡର । ୩୨ ।
ନାନାକ୍ଲେଶ ରୋଗରୁ ମୁକ୍ତ    କରିବା ସାମର୍ଥ୍ୟତା ।
ନିରନ୍ତର ଧ୍ୟାନ ଧାରକ    ହନୁମନ୍ତ କରତା । ୩୩ ।
ସଙ୍କଟରୁ ମୋକ୍ଷ କରିବେ    ଅବଶ୍ୟ ବଳବନ୍ତ ।
ଦୃଢ଼ ବିଶ୍ୱାସ ରଖି ହୃଦେ    ଧ୍ୟାନେ ରଖ ନିରତ । ୩୪ ।
ମନ ବଚନ କର୍ତ୍ତବ୍ୟରେ    ରଖିଥିବ ଯେ ଚିତ୍ତ ।
ନାନା ଆପଦରୁ ରଖିବେ    ଧାଇଁ ସେ ହନୁମନ୍ତ । ୩୫ ।
ସୃଷ୍ଟି ସଂରକ୍ଷକ ଶ୍ରୀରାମ    ତପୋବନାଧି ବାସୀ ।
ତାହାଙ୍କ କାର୍ଯ୍ୟ ସଫଳକ    ମହାବୀର ହିଁ ବାସୀ । ୩୬ ।
ଅନ୍ତର୍ଜ୍ଞାନରେ ଅଭିଦେଖ    ଯାହାର ଯେ କଳ୍ପନା ।
ଇଚ୍ଛାରୁ ବଳକର ଲଭ    ଅଧିକରେ ଭାବନା । ୩୭ ।

ଏବି ଯୁଗରେ ହନୁମନ୍ତ   ବଖ୍ୟାତ ତୁମ୍ଭ ଅଛ ।
ଜଗତ ଉଜ୍ଜ୍ୱଳ ପ୍ରସିଦ୍ଧ   ହନୁ ପାଇଁ ରହିଛ । ୩୮ ।
ସାଧୁ ସନ୍ଥ ଧର୍ମ ରକ୍ଷକ   ତୁମ୍ଭେ ହେ ମହାବୀର ।
ଦାନବ ହନ୍ତା ସେ ହୋଇଣ ରାମଙ୍କ ପ୍ରିୟବର । ୩୯ ।
ବ୍ରହ୍ମଚରୂପଣ ଅଷ୍ଟାଙ୍ଗ   ନବ ଉପଜ ଜ୍ଞାନ ।
ଜନକାତ୍ମଜା ଆନନ୍ଦରେ   ଦେଇ ଅଛନ୍ତି ଦାନ । ୪୦ ।
ସ୍ତମ୍ଭନ ମୋହନ ଉଚ୍ଚାଟନ ବଶୀକରଣ ସବୁ ।
ରାମଙ୍କ ଅଙ୍ଗେ ଥିବା ଧନ   ଚିନ୍ତିଲେ ତୁ ପାଇବୁ । ୪୧ ।
ଏବର ମିଥିଳା ନନ୍ଦନୀ   ଠାରୁ ପାଇଣ ଅଛ ।
ସହୋଦ୍ର ବନ୍ଧୁ ପ୍ରାପ୍ତ ହୋଇ ଦାସତ୍ୱ ନେଇ ଅଛ । ୪୨ ।
ତୁମ୍ଭଙ୍କୁ ଭଜିଲେ ଶ୍ରୀରାମ   ଚନ୍ଦ୍ରଙ୍କୁ ସେ ପାଇବ ।
ଜନ୍ମଜନ୍ମାନ୍ତର ଦାରିଦ୍ର୍ୟ   ଦୁଃଖ ପାସୋର ଯିବ । ୪୩ ।
ପ୍ରାଣାନ୍ତେ ଶ୍ରୀରାମଙ୍କବାସ   ବୈକୁଣ୍ଠ ପୁର ଯିବ ।
ଅନ୍ୟଜନ୍ମରେ ହରିଭକ୍ତ   ନିଶ୍ଚୟ ସେ ପାଇବ । ୪୪ ।
ଅନ୍ୟଦେବତାଙ୍କ ଆଶ୍ରୟ   ଯେ କଲେ ନାହିଁ ଲାଭ ।
ହନୁମନ୍ତଙ୍କ ଆଶ୍ରୟରେ   ପ୍ରାପ୍ତ ଦେବ ବୈଭବ । ୪୫ ।
ସଙ୍କଷ୍ଟୁ ଉଦ୍ଧାରି ଦୁଃଖକୁ   ନାଶିବେ ମହାବୀର ।
ରଖି ଶୁଦ୍ଧ ଚିତ୍ତ ସେ ହନୁ ବଳବନ୍ତକୁ ସ୍ମର । ୪୬ ।
ଜୟ ଜୟ ହେ ହନୁମନ୍ତ   ଗୁଣନିଧି ସାଗର ।
ଦୟାକର ହେ ଗୁରୁଦେବ   ଜ୍ଞାନ ଦେବା ପ୍ରକାର । ୪୭ ।

ହନୁମନ୍ତଙ୍କର ଶ୍ଳୋକା    ଶତବାର ସ୍ମରିଲେ ।
ସଙ୍କଷ୍ଟ ବନ୍ଧନରୁ ମୁକ୍ତ    ସୁଖ ସମ୍ପଦପିଲେ । ୪୮ ।
ବଙ୍କଜନେ ସେବନ୍ତୁ ଦମ୍ଭେ    ସ୍ମର ଏହୁ ଶ୍ଳୋକା ।
ହୃମାରୌଷ୍ଟ୍ରି ସାମରେବକଦେ ପୂର୍ଣ୍ଣଅ ଦୃଷ୍ଟି ଥଣା । ୪୯ ।
ମହାପୂଜ୍ୟ ତୁଳସୀ ଦାସ    ଶ୍ରୀହରିଙ୍କ କୋସ୍ତୁର ।
ଅଟେ ହନୂମନ୍ତ ସ୍ତୁତ୍ୟ    କରିବ ସମୋହର । ୫୦ ।
ରକ୍ତବର୍ଣ୍ଣ ନେତ୍ର ଗାଳଜା    ଲାଙ୍ଗୁଡ଼ ରଙ୍ଗାକାର ।
ଦାନବଙ୍କ ଦର୍ପ ଦଳନେ    ବଜ୍ର ଅଙ୍ଗ ସୁନ୍ଦର । ୫୧ ।
ଜୟ ବାରମ୍ବାର ହେ ହନୂ    ତୁମ୍ଭ ପାଦେ ଶରଣ ।
ସଙ୍କଷ୍ଟ ଧାରକ ଗ୍ରହଣ    ବଳ ଏହା ଜଣାଣ । ୫୨ ।
ତୁଳସୀଦାସଙ୍କ ମତର    ଉତ୍କଳ ଭାଷା କରି ।
ଅନୁବାଦରେ ଜଣାଉଛନ୍ତି    ଦୀନ ହୀନ ବେହାରି । ୫୩ ।

## ସଂକଟମୋଚନ ସ୍ତୋତ୍ର ।

ରାଗ ( ପୂର୍ବ )

ବାଲ୍ୟକାଳେ ଭାବ ତ୍ରିମରସଙ୍କ ରବଙ୍କି ଭକ୍ଷିଲ କ୍ଷୁଧାରେ ।
ତିପୁରାନ୍ଧକାର ହୋଇ ଖରହର ଅପହୁଁ ଉଦ୍ଧାର ନ ଲଭଲେ । ୧ ।

ଦେବତାଦିଗଣ ବନ୍ଦଭୂମିସ୍ଥାନ ସର୍ବସ୍ବ ମୋଚନ ସେ ଭାସ୍କର ।
ଏବେ ନ ଜାଣନ୍ତି ଭୂମିର ବଢ଼ିଲା ସଙ୍କଟମୋଚନ ମହାବୀର ।
ବାଳିର ଯେତେ ତ୍ରାସ ସୁଗ୍ରୀବର ବଶ ଉଦ୍ଗାରି ବାସ ସେ ରହୁଲେ ।
କାଳହୃଦେ ଧରି ସନ୍ଧିମେଳ କରି କପିଶ୍ରେଷ୍ଠ ଜଣାଇ ସମ ମୂଳେ ।
ଦ୍ୱାରପାଳ ହୋଇ ଶପଥକୁ ଦେଇ ମୁନି ଶ୍ରେଷ୍ଠଥିଲେ ସେହୁ ସ୍ଥଳେ
ବୋଲ୍ଲ ଦ୍ୱିଜବେଶ ହୋଇଣ ପ୍ରବେଶ ପ୍ରଭୁସଙ୍ଗ ମେଳ କହୁକଲେ
ସୁଗ୍ରୀବର ତ୍ରାସ କରିଥିଲ ନାଶ ମୁଁହୁଁ ତବ ଦାସ କଷ୍ଟହର ।
ଏବେ ନଜାଣନ୍ତି ଭୂମିର ବଢ଼ିଲା ସଙ୍କଟ ମୋଚନ ବୀରବର । ୨ ।
ସୀତାଖୋଜିବାର ଅଙ୍ଗଦସଙ୍ଗର ମେଳହେବା ଭାବ ହୃଦୟର ।
ସୁଗ୍ରୀବରାଜନ ନିଷ୍ଠୁର ବଚନ ଖୋଜ ଥିଣିହେଥ ମହାବୀର ।
ସମ୍ବାଦ ନ ଆଣି ଯେ ଅସିବ ଜାଣି ପ୍ରାଣହେବ ଭବ ନଷ୍ଟେ ଜାଣ ।
ବାନ୍ଧକରି ପଣ ସମୁଦ୍ରଦସ୍ଥାନ ନପାଇଣ ଚିନ୍ତା ମନରେ ।
ସଙ୍ଗେଥିବା ଜନ ସଙ୍ଗେ ହତଜ୍ଞାନ ଦଗ୍ଧ ବଣଗଲ ଭାବଧର ।
ଏବେନ ଜାଣନ୍ତି ଭୂମିର ବଢ଼ିଲା ସଙ୍କଟ ମୋଚନ ହନୁମାନ । ୩ ।
କାପଟ୍ୟ ହୃଦୟ ଦେଖାଇବା ଭୟ କଣ୍ଠାବାନ୍ଧ ମନେ ଦଶାନନ ।
ସ୍ବୟଂସୀଙ୍କ ପଲ ରକ୍ଷିସୀତା ସ୍ଥଳ ପରିଚୟରେ ଶୋକ ନାଶିଣ ।
ସେହୁକାଳ ଜାଣି ଅତିବୀର ମଣି ଦାନବଗଣଙ୍କ ହନ୍ତାହେଲ ।
ଭାବମର୍ମଜ୍ଞ ସୀତାଙ୍କର ଠାବ ମୁଦ୍ରିକା ଦେଇ ସନ୍ତୋଷ କଲ ।
ଅଶୋକ ସେବଣ କରିରଣରଣ ଲଙ୍କା ପୋଡ଼ି କଲ ନାରଖାର ।
ଏବେ ନଜାଣନ୍ତି ଭୂମିର ବଢ଼ିଲା ସଙ୍କଟ ମୋଚନ ବୀରବର । ୪ ।

ଯୁଦ୍ଧ କାଳବାର୍ତ୍ତ ଲକ୍ଷ୍ମଣବ୍ୟବସ୍ଥା ବଜ୍ର ପ୍ରହାରିଲା ସେ ରାବଣ ।
ଦୋଇ ହନୁମାନ ସମସ୍ତେ ଜଡ଼ନ୍ତ ଔଷଧ ନେବାକୁ ଗଲେ ପୁଣ ।
ସୁଷେଣଙ୍କ ବାଣୀ ହୃଦେ ଚାହାଁବୁଣି ଦ୍ରୋଣଗିରି ଉପାଡ଼ି ଆଣିଲ ।
ଆଣି ସଞ୍ଜୀବନୀ ପ୍ରୟୋଗରେ ଜାଣି ଲକ୍ଷ୍ମଣଙ୍କୁ ଜୀବନ୍ୟାସ ଦେଲ ।
ସେ ଯେ ରଘୁନାଥ ସୈନ୍ୟାଦସଙ୍ଗେଣ ଉଚ୍ଚାରିଲେ ଜୟ ଜୟସ୍ୱର ।
ଜୟ ନଳାଣସ୍ତ୍ର ଭୂମ୍ବର ନନ୍ଦନ ସଙ୍କଷ୍ଟ ମୋଚନ ହନୁବୀର ।୫।
ରାବଣ ଯୁଦ୍ଧରେ ହନୁମାନଙ୍କରେ ଅସ୍ତ୍ରମାଳ ଶର ପ୍ରହାରିଲା ।
ରଘୁବର ସୈନ୍ୟ ସେନାଗଣକନ ସମସ୍ତଙ୍କୁ ଅସ୍ତ୍ର ଯୋଟିଥିଲା ।
ଶ୍ରୀରାମ ଲକ୍ଷ୍ମଣ ଦେଖି ହନୁମାନ ଭୂମେ ବଶୀପଣ ଯାଉଥିଣି ।
ଗରୁଡ଼ ଆଣିଣ ସଙ୍କଷ୍ଟ ଖଣ୍ଡିଣ ସୈନ୍ୟ ଅନନ୍ଦ ଭୂମୀରି ଦେନ ।
ରାବଣର ଗର୍ବ କଲଭୂମେ ଖର୍ବ ଆନନ୍ଦ ପ୍ରଫୁଲ୍ଲ ରାମଚନ୍ଦ୍ର ।
ଜୟ ନଜାଣନ୍ତ୍ର ଭୂମ୍ବର ନନ୍ଦନ ସଙ୍କଷ୍ଟ ମୋଚନ ବାନାଚୋର ।୬।
ଭାଇବନ୍ଧୁ ଗଣ କରି ପ୍ରେମଧାନ ଅହିରାବଣ କପଟ କରି ।
ଶ୍ରୀରାମ ଲକ୍ଷ୍ମଣ ପାତାଳ ଭୁବନ ଯେନଗଲା ଦେବାକୁ ଫହାଡି ।
ଅଭୟା ଭୈରବୀ ରଖାଇଣଛନ୍ତି ବଳଦେବା ଭାବ ସେ ଯେଥିଲା ।
ଭୂମେ ଯାଇକରି ସୈନ୍ୟଚାର ମାରି ଖଣ୍ଡିଲ ଚାଣିବି ନାଶଗଲା ।
ପୁଣ ବନ୍ଧୁରାଜା ବଜାଇଣ ବଜା ରାବଣର ହେଜା ନାରଖାର ।
ଜୟ ନଜାଣନ୍ତ୍ର ଭୂମ୍ବର ନନ୍ଦନ ସଙ୍କଷ୍ଟ ମୋଚନ ନାମଚୋର ।୭।
ସୁରନରଙ୍କର କାର୍ଯ୍ୟର ବେଗର ବଡ଼ନ୍ତେକ ଚଢି ଖ୍ୟାତ ହୁଅ ।
ସାମାନ୍ୟ ଜୋହୁଃଖ ଏହାକୁ ନ ଦେଖ କରୁଛ ବିବେକ ଲାଗେଉନ୍ତ ।

ଯେବେ ଅଛ୍ରପଣ ସଙ୍କଷ୍ଟ ଶତ୍ରୁନ ବେଗେ ଅସିକର ମହାବୀର ।
କଏ ନଜାଣନ୍ତ ତୁମ୍ଭର ବିଦିତ ସଙ୍କଷ୍ଟ ମୋଚନ ନାମ ତୋର ।୮।
ନର୍ଦ୍ଦୋଷରେ ପାପ ଲଭ କାପୁବାସ ବକ୍ତିଶ୍ରବେ ହନୂମାନ କୀର୍ତ୍ତି ।
କବେ ସ୍ୱପ୍ନରେ ଗାଯ୍ତନ ଶୁଣି ହନୂମାନ ଖଣ୍ଡିଲେ ତୁଲସୀ ଦାସ ଭ୍ରାନ୍ତି ।
ଏହି ଅଷ୍ଟକ ଉଚ୍ଚାର ସଙ୍କଷ୍ଟରୁ ପାର ଲଭିଲେ ଜୁଷ୍ଟାସ ଜୀବ ।
ପ୍ରକାଶକ ହେଲେ ସାଧୁ ସନ୍ଥ ମେଳେ ସଙ୍କଷ୍ଟ ମୋଚନ ସାରଜୀବ ।
ହୃନ୍ଦଶାସ୍ତ୍ରି ତ ଉତ୍କଳରେ ଯୁକ୍ତ ଅନୁବାଦ ମୋର କରିବାର ।
ବେଦାରଦାସ କହିଲ ଭଞ୍ଜମହାବଳୀ ହନୂମାନଙ୍କ ସଦାବୋଧ୍ୟର ।
ଅହେ ମହାବୀର ଭୂମ୍ୟପରକର ସଙ୍କଷ୍ଟ ହରର ଶୀରବର ।୯।



# ଗଦ୍ୟରେ ଜବର କହି ଅଛନ୍ତି ।



ଋକ୍ଷପର୍ବ ନାମକ ଏକ ବିଶାଳ ବନ, ତହିଁରେ ଶଙ୍କଶୃଙ୍ଗାମକ ପର୍ବତ ରହିଅଛି । ତନ୍ମଧ୍ୟ ସରୋବରର ପୁଷ୍କରିଣୀ ମହାପ୍ରେମଦାୟକ ଶୁଭ ସ୍ଥାନଅଟେ । ଶିବ ଜକଟବର୍ତ୍ତୀ ସେଠାରେ ବନକନ୍ୟା ଅଞ୍ଜନୀ ଶିବଙ୍କ ଇଚ୍ଛାକର ତପସ୍ୟା କରୁଥିବେ । ଅଞ୍ଜନୀ ମହା ତପସ୍ୟାବତୀ ଓ ଶାନ୍ତ-ମତ ସାଧ୍ୱୀ ସତ୍ୟବତୀ ଥିଲେ । ଏକ ସମୟରେ ଅତି ଅନଳ ପ୍ରଖର ମାର୍ତ୍ତଣ୍ଡ ତତଣରେ ଶ୍ରମିତ ହୋଇ ସେଠାରେ ପ୍ରବେଶ ହେଲେ । ଅହା ବ ଅନନ୍ଦଦାୟକ ! ସରୋବର ସନ୍ନିକଟରେ ନାନାବୃକ୍ଷମାନଙ୍କ ଦ୍ୱାର ଘନଘନ ପଲ୍ଲବରେ ଶସ୍ପ ହୋଇ ରହିଅଛି । ବସନ୍ତ ସମ୍ମତ ମନମୁଗ୍ଧକାରକରେ ରହୁଥିବା ହେତୁ ବସନ୍ତ ତାହାଦେଖି ଶୟନରେ ଇଚ୍ଛା କଲେ । ଏଣୁ ସେହି ବସନ୍ତ ପବନ ବାଞ୍ଛ କାମୋଦୀପନ ଅର୍ଥାତ୍ କନ୍ଦର୍ପ ଉଦ୍ଦୀପନରେ ବସନ୍ତର ରେତସ୍ଖଳିତ ହେଲା । ସରୋ-ବରରୁ କମଳପତ୍ରଅଣି ମହାଯତ୍ନ ପୂର୍ବକ ପୁଟଅବାନ୍ଧ ରଖିଲେ । ସ୍ତ୍ରୀମାନଙ୍କର ଚଞ୍ଚଳମତି ସ୍ୱଭାବ ହେତୁ କାର୍ଯ୍ୟନମଣି ଜଣ ରଖା ହୋଇ ଅଛି ଭାବି ଅଞ୍ଜନୀ ତାହା ଭକ୍ଷଣ କଲେ । ସେହି ଭକ୍ଷଣରେ ତାଙ୍କର ଗର୍ଭାବସ୍ଥା ହେଲା । କାଳାନ୍ତରେ ଦୈବ ଯୋଗେ ପବିତ୍ରତାରେ ସେଠାରୁ ବସନ୍ତ ଅସିଲେ ପତ୍ର ପୁଡ଼ିଆ ଖୋଜିବସିଲେ ଭାବିଲେ

ଅଗ୍ନିରେ ଦଗ୍ଧ ନ ହୋଇଗଲ୍ , ଏହାଶୁଣି ବିଶାଦଯୁକ୍ତ ହେଲେ ସେଠାରେ ଅଞ୍ଜନୀ କହିଲେ ତୁମ୍ଭେ ବଂ କାହିଁକ କଣ ଖୋଜାହେଉଛ ଅଛ । ଏହା କହିବାକୁ ପବନ କହିଲେ ମନ୍ତ୍ରସାର୍ଦ୍ଧ୍ୟ କମଳ ପତ୍ରରେ ବାନ୍ଧିରଖିଥିଲ । ଏହାକହି ବନରୁ ବାହୁଡଗଲେ । ଅଞ୍ଜନୀ ସେଠାରେ ମନ ମଳନତା କଲେ ।

ଭାବିଲେ ଅକର୍ମଙ୍କର ମନ ସନ୍ତାପିତ ହେବାର କାରଣ କ ? ମୋର ଉଦରକୁ ମୁଁ ଚଢିପଡ଼ାଏଁ । ଏହାକହି ଉଦରକୁ ଚଉ ବସିଲେ ବିଶ୍ୱେଶ୍ୱର ମହାଦେବ ଅକାଶ ବାଣୀ କଲେ । 'ରେ ହନୁମନ୍ତ ମହାକଷ୍ଟକାରକ' । ଏହା ଶୁଣିକରି ଅଞ୍ଜନୀ ସମୀପବର୍ତ୍ତିନୀ ହେଲେ । ଶିବ କହିଲେ ଏହା ପ୍ରମାଣକଥାନେଇ ମନରେ ରଖ ମୋର ଏକାଂଶରୁ ତୋରଗର୍ଭରେ ପୃଥିବୀର ପ୍ରଶଂସାକାରକ ପୁତ୍ରଜନ୍ମ ହେବ । ଶ୍ରୀରାମ ଭକ୍ତ ସାହସିକ ଧୀଶକ୍ତିବାନ୍ ବିଖ୍ୟାତ ହନୁମନ୍ତୁଷାର ତବ ଗର୍ଭସ୍ଥିତ ପୁତ୍ର ମମ ଏକାଦଶରୁଦ୍ର ଧାରକରେ ଜାତ ହେବ । ଦେବତାଙ୍କ କାର୍ଯ୍ୟ ସିଦ୍ଧି ସଂଗ୍ରାମରେ ଯୁଦ୍ଧର ବୀରମୂର୍ତ୍ତିଧାରକୋପୃତ୍ତ ହେବ । ଅଞ୍ଜନୀ କହିଲେ ହେପ୍ରଭୁ ମୁଁ ଅବଳା ଜର୍ଦ୍ଦୋଷରେ ମୋର ପ୍ରତି ଦୋଷ ନଷ୍ଟନା ରହିବାର ଏହା ବରର କରନ୍ତୁ ।

ଅକାଶବାଣୀ କେଶରୀନାମକ କପୀନ୍ଦ୍ର ମହାପ୍ରକାଣ୍ଡ ରୂପରେ ଶମ୍ଭୁସେବାରେ ମଗ୍ନ ଅଛନ୍ତି । ଏଠାରେ ଅଞ୍ଜନୀମଧ ତପଯୋଗରେ ରହି ଥିଲେ । ଅନ୍ୟଅଡ଼େ କେଶରୀକପିନ୍ଦ୍ର ତପସ୍ୟା ସାଧନରେ ପ୍ରବୃତ୍ତ ଥିଲେ । ହରଅଜ୍ଞାକ୍ରମେ ଧର୍ମ ତନ୍ତ୍ରାଦେବୀ ଏଠାରେ ଉଭୟଙ୍କର

ପାଣିଗ୍ରହଣ ସମ୍ପନ୍ନ ହେଲା । ଯାହାର ପ୍ରସାଦ ତ୍ରିଲୋକରେ ବ୍ୟାପ୍ତ ହେଲା । ଦେବତା ମୁନିଗଣ ସର୍ବେ ଆନନ୍ଦ ପ୍ରକାଶ କଲେ । ଏଠାରୁ ଅଞ୍ଜନଙ୍କ ଉଦରରୁ ମହାବୀର ହନୁମନ୍ତ ପର୍ଯ୍ୟାୟୁ ଦେବତାଙ୍କର ସହାଦ୍‌ରେ ବିଷ୍ଣୁଙ୍କର ଭକ୍ତ ମହାବଳବନ୍ତ ମୂର୍ତ୍ତିଧାରକ ହୋଇ ଜନ୍ମ ହେଲେ ।

